ପ୍ରଥମ ସଂସ୍କରଣ—ଡିସେମ୍ବର, ୧୯୫୯

ପ୍ରକାଶକ—ଶ୍ରୀ ସୋମନାଥ ତ୍ରିପାଠୀ, ପୁରୀ

ମୁଦ୍ରାକର—ଶ୍ରୀ ଗୌରଚନ୍ଦ୍ର ମହାପାତ୍ର,
ଗୋପୀନାଥ ପ୍ରେସ୍, ଭଦ୍ରକ



ମୂଲ୍ୟ—ପଞ୍ଚସ୍ତରୀ ନୟା ପଇସା ମାତ୍ର

ଶାନ୍ତି ନିକେତନଙ୍କର ସତୀର୍ଥା

ଶ୍ରୀମତୀ କଲ୍ୟାଣୀ ଘୋଷାଲ ଓ

ଶ୍ରୀମତୀରାଧାରାଣୀ ପଟ୍ଟନାୟକଙ୍କୁ

ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ :

## ଟୀ କପ୍‌ରେ ଝଡ଼

(ଯୁଗୋପଯୋଗୀ କବିତାବଳୀ)

ମୂଲ୍ୟ—ବାରଅଣା

## ପ୍ରଗତି ସାହିତ୍ୟ

(ତଥ୍ୟପୂର୍ଣ୍ଣ ସମାଲୋଚନା)

ମୂଲ୍ୟ—ଏକଟଙ୍କା ବାରଅଣା

## ସୃଷ୍ଟିର ସ୍ୱପ୍ନ

(ଚମକପ୍ରଦ ଗଳ୍ପଗୁଚ୍ଛ)

ମୂଲ୍ୟ—ବାରଅଣା

## ଯଥା ନଳସ୍ୟ ଦମୟନ୍ତୀ

(ଏକାଙ୍କିକା-ସଞ୍ଚୟନ)

ମୂଲ୍ୟ—ଏକ ଟଙ୍କା ବାରଅଣା

ଏଇ ଝିଅଟିକି ଜାଣ କି ? ବନ୍ଧୁ, ଜାଣ କି ?
ରୂପ ଚହଟାଇ ବାସ ମହକାଇ ଯାଉଁ ଯାଉଁ ପଛେ ଚାହୁଁଥାଏ
ଫେର୍ ଫେର୍କି ।
ବନ୍ଧୁ, ଜାଣ କି ?

ଗୋରି ନୁହେଁ ସେ ତ, କାଳି ବି ନୁହଁଇ, ପାଞ୍ଚଫୁଟିଆ ଶରୀରଟି
ଜୀବନେ ହୁଏତ ଫଳାଉ ଫଗୁଣ କଟିଛି କୋଡ଼ିଏ ବାଇଶିଟି !
ଝୁମ୍ପୁଳା ଗୋଟିଏ ଗଢ଼ା ତା'ର ତନୁ ଛଇଳ ଚପଳ ଢଳ ଢଳ
ଆଖିରେ ନିଜକୁ ସଅଁପି ଦେବାର ମଁଦିର ଆବେଗ ଛଳ ଛଳ ।
ଉନ୍ନତ ବୁକୁ ଗର୍ବରେ ଯେତେ ହଜ ପଡ଼ିବ କି ଠିକ ଠିକେ
ଉନ୍ନତ ଜୁଡ଼ା ପୁଷ୍ପ-ଶୋଭାରେ କି ଇଶାରା ଦିଏ ଲାଜ୍ରିତ କିଏ ?
ପ୍ରତି ପଦପାତ ଛନ୍ଦ ତୋଳଇ ମନ୍ଦ ମନ୍ଦ ରଗିଣୀରେ;
ଅସୁବିଧା କିଛି ନାଇଁ ଝିଅଟିକି ଚିହ୍ନିବାରେ ।
କିନ୍ତୁ ଅଗରେ ତା' ନାଆଁଟା ରହିଛି ଅଜ୍ଞାତ—ବନ୍ଧୁ, ଜାଣ କି ?
ହେଲେ ହେଉଥିବ କବିତା, ସବିତା, କି ଅବା ଚମ୍ପା, କେତକୀ !
ବିବାହିତା କିବା ଅବିବାହିତା ସେ କହ ଦେଖି ?
ସୁନ୍ଥାରେ ତା'ର ସିନ୍ଦୂର ଗାର କେବେ ପରା ଥିବ ନାଇଁ ଲେଖି ।

ଆଜି ଦେଖ ତାଙ୍କୁ ଝଙ୍କାଲ୍ମାରେ ବେପଥୁ ଘଣ୍ଟାଇ ଘୁଚିବାର
କାଲି ଦେଖିଥିବ ଝଙ୍କ-ଭବନରେ 'ଭେରାଇଟି ଶୋ' ଜମିବାର
ଆଜି ସେ ଅନାଥା-ଆଶ୍ରମ ଲାଗି ଚାନ୍ଦା ମାଗୁଛି ଘରେ ଘରେ
କାଲି କେଉଁ ଧନୀ ଯୁବକ ସାଥିରେ ବସିଛି 'ହିନ୍ଦ' ସିନେମାରେ ।
କଲେଜ ଟୋକାଏ ଚା'ଆ ଟେବୁଲ୍‌ରେ ତାରି କଥା ନେଇ ବକାବକି
ବଜାର ଦଲାଲଟା ମୁହଁର ମାରନ୍ତି ଛକା ଛକି ।
ଦେଖିଛ ? ବନ୍ଧୁ, ଦେଖିଛ କି ?
ସହରର କେତେ ଲୋକ ଦେଖାଗାରେ ବହୁରୂପୀ ଏଇ ଝିଅଟିକି ?

ଦେଖ ଦେଖ, ସିଏ ସହରତଳିର ନୂଆ ରିଫିଉଜି କଲୋନିରେ
ଆପଣାର ଛୋଟ କୁଡ଼ିଆରେ
ଛଅ ବରଷର କୁନା ପୁଅ ମୁଖେ ଆହାର ଦିଅଇ ଆଦରରେ ।
'ମାଆ' ଡାକ ଶୁଣି ପରାଣ ତାହାର ଉଚ୍ଛୁଳେ ପୁଲକ-ଜୁଆରରେ
ଲବଣୀ ପିତୁଳା-ଶିର ପରେ ଢାଳେ ଶତ ଚୁମ୍ବନ ସୋହାଗରେ !
ରୁଗ୍ଣ ସ୍ୱାମୀ ତା' କଡଟି ଧରିଛି, ଭୋଗୁଛି ହେଲାଣି ବହୁ ଦିନ -
"ଆଜି କେତେ ହେଲା ?"—ପଚାରଇ ହୋଇ ଖୁସି-ମନ ।
ପାଞ୍ଚଟି ନୋଟ୍ ଝିଅଟି ହାତରେ ଉପରକୁ ଟେକି ଦେଖାଇଲା
ସ୍ୱାମୀ ପାଦ ଧରିରେ ଆଉଁସୁ ଆଉଁସୁ ନୟନ-ଲୋତକେ ଭିଜାଇଲା ।
ଦେଖୁଛ ? —ବନ୍ଧୁ, ଦେଖୁଛ କି ?
ଏଇ ମହୀୟସୀ ସତୀ ପତ୍ନୀକି, ଏଇ ସ୍ନେହମୟୀ ଜନନୀକି ?

(କଟକ—୧୯୫୭)

( ୧ )

ଷ୍ଟେସନରୁ ଯିବ କୁଆଡ଼ାକେ !
ସିଧା ବାଟ ।
ସେ'ଠୁ ପାଇବ ବାସ୍ କିବା ରିକ୍ସା ।
ପଡ଼ୁ ପଛେ ବେଶୀ ଦୁ'ପଇସା
ରିକ୍ସା ହିଁ ସୁବିଧା,
ବାସ୍‌ରେ ବଡ଼ ଭିଡ଼ି
ବାର ଜାଗା ଘୁରିବ,
କିନ୍ତୁ ରିକ୍ସା ଯିବ ସିଧା ।
ଅଭ୍ୟସ୍ତ ରିକ୍ସାବାଲାକୁ
ଖାଲି ଟିକିଏ ଠାରି ଦିଅ —
"ଚଲ—ଭାଲୁବାଇ !"
ରିକ୍ସା ଯାଇ ପହଞ୍ଚିବ
ପରିଚିତ ଠିକଣା ଯାଗାରେ
ଦାଉଦ୍ରାଣ ଦାଉଦ୍ରାଣ ନାଇଁ ।

ଅନ୍ଧାର କାଟିକାଟି ସମସ୍ତ ଲେନ୍‌ଟା ।
ମ୍ୟୁନିସିପାଲିଟି ଦୋଷ ନୁହେଁ ସେଠା,
କେରୋସିନି ବତୀ ସେ ଖଞ୍ଜିଛି
ଅନେକ ଥର
କିନ୍ତୁ ପ୍ରତ୍ୟେକ ଥର ଚୋରିଯାଏ,
କୋହିଲେ କିଏ ଭୁଙ୍ଗି କରେ ଚୁରମାର ।
ପୂର୍ଣ୍ଣ ଦିନ ବେଳେ ଏ ଜଳନ୍ତା ସୂର୍ଯ୍ୟ
ଦାଉ ନାଲିଛି—
ବିଶ୍ବସ୍ତ ଗୃହକର୍ତ୍ତା ପରି
ଘଣ୍ଟି ଧରି ଆସେ ବରାବର ।
କି ଦରକାର ?
କିବା ରାତି, କିବା ଦିନ
ଅଲୁଅ ଲୋଡ଼େ ନା ଭିନୁବାଇ ଲେନ୍ !
ଅନ୍ଧାର ଭଲ—
ଭୁଆଁସ ଅନ୍ଧାର
ମଣିଷ ଜାନୁଅର୍‌ର ନିଷିଦ୍ଧ ଆଚରଣ
ଘୋଡ଼ାଇ ରଖିବା ଲାଗି
ଅନ୍ଧାର ଭଲ—
କଳା ମଚମଚ ଅନ୍ଧାର !

ହୁସିଆର୍ !
ଦେଖି ଶୁଣି ଯିବ !
ଲେନ୍ ଦି' ପାଖରେ ଗଙ୍ଗା-ଯମୁନା ଧାର
ପଚ୍ଛି ନର୍ଦ୍ଦମାର
ପାଦ ଯୋଡ଼ିକ ପବିତ୍ର ହୋଇଯିବ ।

ପ୍ରତ୍ୟେକ ଘର ଦୁଆର ମୁହଁରେ
ଏକ୍ସିଡେଣ୍ଟ୍ ବି ହୋଇପାରେ ।
ହୋଇ ଲକ୍ଷ୍ୟ କର—
କେତେ କ୍ଷୁଧାତୁର ଲୋଲୁପ ଚକ୍ଷୁ
ଖୋଜୁଛି ଶିକାର !
କେତେ ଉଦ୍ଧତ ବୁଲ୍ଲୁର ଥୋପ
ଭିଡ଼ୁଛି ଶିକାର !
ହୁସିଆର୍ !
କେତେକ ଘରୁ ଶୁଣିବ ଅଶ୍ଳୀଳ ସଙ୍ଗୀତ
ଆଉ ଉଚ୍ଛୃଙ୍ଖଳ ନୃତ୍ୟ ।
କେଉଁଠି ବା କାନରେ ପଡ଼ିବ
ମତୁଆଳୀର ହସ—ନାରୀର
ଆଉ ବାତୁଳ କଥା—ପୁରୁଷର ।
କେଉଁଠି କେବଳ
ଆତଙ୍କପୂର୍ଣ୍ଣ ଏକ ଗାଁ ଗାଁ ଶବ୍ଦ
କିବା ବିକଟ ଚିତ୍କାର ।
ଭୟ କରିବ ନି !
ବିଶ୍ୱାସ କର—
ସେମାନେ ମଣିଷ
ଭାଇ-ଭଉଣୀ ଆମର ।
ହୁସିଆର୍ ହୋଇ ଯିବ !
ବାଁ ପଟେ ଲକ୍ଷ୍ୟ ରଖି ଚାଲିବ !
ଏକ୍—ଦୋ—ତିନ୍—ଚାର୍—
ଗଣି ଗଣି
ସାତଟା ଘର ହେବ ପାର୍ ।

ତା'ପରେ ନମ୍ବର ଚଉବନ୍
ଭାନୁବାଇ ଲେନ୍ ।

( ୨ )

ନମ୍ବର ଚଉବନ୍
ଭାନୁବାଇ ଲେନ୍ ।
ଧନ-ପୁରୁଷୀ ସେ ଘର
ଭାନୁବାଇଙ୍କର ।
ଭାନୁବାଇଙ୍କ ମା' ମାନୁବାଇ ।
(ମାଫ୍ କର—
ତାଙ୍କ ବାପାଙ୍କ ନାଁ ଆମକୁ ଜଣା ନାହିଁ ।)
ପୁଣି ମାନୁବାଇଙ୍କ ମା' ଭାନୁବାଇ
(ତାଙ୍କ ବାପାଙ୍କ ନାଁ ବି ଜଣା ନାହିଁ ।)
ଯାହା ଶୁଣାଯାଏ—
ପ୍ରାୟ ପଚାଶ ବର୍ଷ ତଳେ
ବଙ୍କାସ୍ୱୀ ଠୋକାଏ
ଶ୍ରୀମତୀ ଭାନୁମତୀ ଦେଈଙ୍କୁ
କେଉଁ ଏକ ମଫସଲରୁ
ଘେନି ଆସିଥିଲେ ସହରକୁ ।
ମଫସଲର ଲକ୍ଷ୍ମୀ-ଭଣ୍ଡାର ଉଜାଡ଼ ହୁଏ
ସହରକୁ ବଞ୍ଚାଇବା ଲାଗି,
ମଫସଲର କେତେ ଭାନୁମତୀ
ଅନଦାତ୍ରୀ ହୋଇ ଆସନ୍ତି
ସହରର ଶିରୀ ବଢ଼ାଇବା ଲାଗି ।

ଭାନୁମତୀ ଅସିଥିଲେ
ସପ୍ତଦଶ ବର୍ଷ ତଳେ ।
ସେତେବେଳେ ସେ ଷୋଡ଼ଶୀ
ଗୁଚ୍ଛଳ ଗୋଟିକରେ ଯିମିତ ଗଢ଼ା ହୋଇଥିଲେ ।
ରୂପ-ଯୌବନର ମନମଥ ମଦ୍ୟ
ଅଙ୍ଗେ ଅଙ୍ଗେ ଭର୍ତ୍ତି ।
ସହରର ଅନେକ ଲୋକଙ୍କୁ
ସେ ମଦ୍ୟ ମାତାଲ୍ କଲା ।
ତା' ପରେ ହଠାତ୍ ଦିନେ
ପଲ୍ଲୀ ଗାଁର ଭାନୁମତୀ ହୋଇ
ପାଲଟିଲେ 'ଭାନୁବାଈ' ।
ତାଙ୍କର ବାସର-ପୁରେ
ବହୁ ଲୋକଙ୍କର ହେଲା ନୈଶ ମିଳନ ।
ଖ୍ୟାତ ହେଲା—'ଭାନୁବାଈ ଲେନ୍' ।

ଭାନୁବାଈଙ୍କ ପରେ
ଯୋଗ୍ୟା କନ୍ୟା ମାନୁବାଈ
ନିଜର କୌଳିକ ବୃତ୍ତି ବରିନେଲେ
ସମାଦରେ ।
ସେତେବେଳେ ସେ ପଡ଼ାରେ
ପ୍ରତିଦ୍ୱନ୍ଦୀ ଅନେକ ତାଙ୍କର,
'ଭାନୁବାଈ ଲେନ୍' ବୋଇଲେ—
ଦେହ-ବଜାର ବଡ଼ବଜାର ।

ମାନୁବାଈ ଅକାଳରେ ମଲେ ।
ସାନୁବାଈଙ୍କି ପଚାରିଲେ;
କିଛି କିଛି କହନ୍ତି—
ନିଜ ପିଲା-ଦିନର ସ୍ମୃତି :

ମା' ତାଙ୍କୁ ଭାରି ସୁଖ ପାଉଥିଲେ,
ରଙ୍କୁଣିର ବଳା- ନନ୍ଦନ ପିଠୁଳା—
ଘିଅରେ ଖାଇ ଦୁଧରେ ହାତ ଧୋଉଥିଲେ ।
ଦୁଇ ଦୁଇଟା ଚାକରାଣୀ
ଦିନ-ରାତି ତାଙ୍କ ପାଖରେ ଖାଡ଼ା-ପହରା ।
ପୁଣି ପୁଞ୍ଜା ପୁଞ୍ଜା ମାଷ୍ଟରାଣୀ
ସକାଳ-ସଞ୍ଜେ ନାନା ରକମ ପଢ଼ା ।

ସେ ରହୁଥାନ୍ତି ଉପର ତାଲାରେ,
ତଳକୁ ଆସିବା ଲାଗି ତାଙ୍କୁ ମନା ।
ସେଇଠି ସେ ପଢ଼ନ୍ତି, ଖାଆନ୍ତି, ଶୁଅନ୍ତି
ମାଆଙ୍କ ବିନା ।
ମା' ରହୁଥାନ୍ତି ତଳ ତାଲାରେ ।

କାହିଁକି କେଜାଣି
ଝିଅକୁ ସେ ସଦାବେଳେ
ଦୂରଛଡ଼ା କରି ରଖୁଥିଲେ ।
ସାନୁବାଈଙ୍କର ମନେ ଅଛି—
ମାଆଙ୍କ କୋଳରେ ମଥା ଗୁଞ୍ଜିବା ପାଇଁ
ନିଜର ଶିଶୁ-ମନ
ଯେବେ କାନ୍ଦେ ଅଧୀର ହୋଇ,

ମା’ କ୍ଷଣକ ଲାଗି ଆସି
ତାଙ୍କୁ ବୋଧ କରି ଯାଆନ୍ତି ।
ଗୀତ ଗାଇ କହନ୍ତି—
ଦିନ ଭିତରେ ମୋତେ ଦି’ ଥର
ଦେଖା ମିଳେ ମାଆଙ୍କର ।
ଥରେ ସଞ୍ଜ ଆଗରୁ
ଭଲ ବେଶଭୂଷା ହୋଇ ଆସନ୍ତି ।
ମା’ ଯେ କେଡ଼େ ସୁନ୍ଦର
ସେତିକବେଳେ ସେ ଜାଣି ପାରନ୍ତି ।
ମା’ ତାଙ୍କୁ ପଚାରନ୍ତି—
ପାଠ କଥା
ଖିଆପିଆ କଥା ।
ଶେଷେ ହିଅର ସେଇ ଗୋଲାପ-ପାଖୁଡ଼ା ଓଠରୁ
ଚୁମାଟିଏ ଖାଆନ୍ତି ।
ତା ପରେ ସିମିତ ଅତି କଷ୍ଟରେ
ବାଧ୍ୟ ହୋଇ ମେଲାଣି ଘେନନ୍ତି ।

ଆଉ ଥରେ ଆସନ୍ତି ରାତି ଦଶଟାରେ
ଲେନ୍‌ର ଗହଳି ଚହଳି ଊଣା ହେଲେ ।
ସେତେବେଳେ ମାଆଙ୍କୁ ଦେଖି ...
ସେ ଏକାବେଳେ ଉଠନ୍ତି ଚମକି :
ମାଆଙ୍କ ଦେହର ଲୁଗା ବିପର୍ଯ୍ୟସ୍ତ,
ମଥାର ଫୁଲସଜା ବିଶାଳ କବରୀ
ବିସ୍ରସ୍ତ ।

ଫୁଲିଲା ଫୁଲିଲା ଗାଲ ଉପରେ
ଦଂଶନର କ୍ଷତ,
ଅଢ଼ ଆଖି ଯୋଡ଼କ ରକ୍ତାକ୍ତ ।
କଳା କଳା ଦାଗ ଆଖିପତା ତଳେ,
ଯିମିତି ଝଲ ଝଲ କରି ଜଳି ମରୁଛନ୍ତି
ଘୃଣା, ଲଜ୍ଜା, ପୀଡ଼ା, କ୍ଷଣରେ ।
ମାଆଙ୍କର ଏ ଭୀଷଣ ରୂପ ଦେଖି
ଝୁଅ ଆଁ କରି ଗୁହାରି ରହନ୍ତି ।
ମାଁ ଝିଅଙ୍କୁ ଆଦରରେ କୋଳ କରିବେ କଣ,
ଡର ଡର ହୋଇ ପଳାଇ ଯାଆନ୍ତି ।
ମନ ଭିତରେ ପ୍ରବଳ ଝଡ଼
ଯେପରି ଟିକି ଟିକି ହୋଇ ଛିଡ଼ିପଡ଼େ
ସ୍ନେହର ସୁନେଲି ନିଗଡ଼ !
ନା, ନା, ନା,
ଏ ଅନ୍ତର୍ଦାହ ଅନ୍ତର ଭିତରେ ଥାଉ !
ବାହାର ପବନକୁ ଦୂଷିତ କରି ପାରେ,
ପ୍ରକାଶ ନ ପାଉ !
ଶୁଭ୍ର ସତେଜ କଲୀଟି ଜୀବନ୍ତ ଭାବେ ଫୁଟୁ !
କାଠେ ନ କାଟୁ !
ମାଁ ଯାଆନ୍ତି ପଳାଇ ।
ଛୋଟ ଝିଅଟିର କୌତୂହଳୀ ମନରେ
ପ୍ରଶ୍ନ ଉଠେ ତୁହାଇ ତୁହାଇ ।
ଗୃହିଣୀଙ୍କ ସେ କେତେ କଣ ପଚାରନ୍ତି
ମାଆଙ୍କ କଥା ।

କିନ୍ତୁ ହା ଦୁର୍ଭାଗ୍ୟ,
ସମସ୍ତ ଚେଷ୍ଟା ବୃଥା !
ସାନୁବାଇ କହନ୍ତି—
ତାଙ୍କର ଯେବେ ଆଖି ଫିଟିଲା
ବୟସ ହେଲା,
ଯେଉଁବେଳେ ନିଜ ପ୍ରଶ୍ନର ଉତ୍ତର
ସେ ନିଜେ ପାଇଗଲେ,
ଠିକ୍ ସେତିକିବେଳେ
ମା' ତାଙ୍କୁ ଛାଡ଼ି ଚାଲିଗଲେ ।

( ୩ )

ନମ୍ବର ଚଉବନ୍
ଭାନୁବାଇ ଲେନ୍ ।
ଅଜା ସହରର ସଭିଙ୍କି ପଚାର,
କହି ପାରିବେ ତା' ଖବର ।
ଚିହ୍ନିବାରେ ଅସୁବିଧା ନାହିଁ,
ଦେଖ ଯାଇ—
ଦୁଆର ମୁହଁରେ ବଡ଼ ଏକ ସାଇନ୍‌ବୋର୍ଡ୍
'ମହିଳା ଆତ୍ମରକ୍ଷା ସଂଘ' ।
ଚମକି ପଡ଼ ନା !
ଲଙ୍କାରେ ରାମ ନାମ ଶୁଣିଲା ପରି
ବିସ୍ମିତ ହୁଅ ନା !

ଆତ୍ମହତ୍ୟା ନୁହେଁ—
ଆତ୍ମରକ୍ଷା ସଂଘ !
ଗୋବର ଗଡ଼ାରେ ବି ପଦ୍ମ ଫୁଟେ
ମରୁ, ଝାଙ୍କର ଭୂଇଁରେ ବି ଗଛ ଉଠେ ।
ଦେଖ—
ଭଦ୍ରଲୋକ ପରି ପାଖକୁ ଯାଇ ଦେଖ—
'ମହିଳା ଆତ୍ମରକ୍ଷା ସଂଘ'।
ସେ ଚିହ୍ନିଛି ମଣିଷ-ଜାନୁଆର୍‌ଗୁଡ଼ାଙ୍କୁ
କରୁଛି ବିଦ୍ରୂପ, ବ୍ୟଙ୍ଗ !
ସହରର ବହୁ ଭଦ୍ରମହିଳା ସେଠିକି ଆସନ୍ତି :
ଗୃହିଣୀ, ଶିକ୍ଷୟିତ୍ରୀ
ସେବିକା, ନେତ୍ରୀ
ଶିକ୍ଷିତା, ଅଶିକ୍ଷିତା
ନିରାଶ୍ରୟା, ଅନାଥା—
ସମସ୍ତେ ଆସନ୍ତି ।
ଭାନୁବାଇ ଲେନ୍‌ର ବି ଜଣ ଜଣ କରି
ସଂଘରେ ଯୋଗ ଦେଉଛନ୍ତି ।
ସେଠି ସଭା ହୁଏ,
ସଂଘର ମୁଖପତ୍ର ଲେଖାଯାଏ,
କେତେଙ୍କ ଆଲୋଚନାରେ
ବିତିଯାଏ ଦିନ ପରେ ଦିନ ।
ହେଇ, କାନ ଡେରି ଶୁଣ—
ସଂଘ ସଂପାଦିକା ଭାନୁବାଇଙ୍କ କଥା
ଜ୍ୱଳନ୍ତ ବକ୍ତୃତା :

''ଭଉଣୀମାନେ,
ନାରୀ ଜାଗରଣର ଏ ଶୁଭ ଦିନେ
ଦେଖି ଆମର ଦୁରବସ୍ଥା
ଆତ୍ମନିର୍ଭରଶୀଳ ହେବା ପାଇଁ
ଆମ ଲାଗି ନାହିଁ ଅନ୍ୟ ପନ୍ଥା ।
ଶହ ଶହ ଭଉଣୀ ଆମର
ବିପନ୍ନ, ବିପଥଗାମୀ ।
କିନ୍ତୁ କାହିଁ ପ୍ରତିକାର !
କିଏ ଆମର ମଙ୍ଗଳକାମୀ !
ଏହି ବିଂଶ ଶତାବ୍ଦୀରେ
ପୃଥିବୀର ଅନେକ ଦେଶରେ
ସମାଜ ସର୍ପିଣୀ, ଉପଦଂଶ-ରୋଗୀ;
ସେଠି ଆଜି 'ରେଡ୍ ଲାଇଟ୍ ଡିଷ୍ଟ୍ରିକ୍ଟ'
ଗଢ଼ା ହୋଇଛି ଆମରି ଲାଗି ।
ନାରୀ ସମାଜର ଦାସତ୍ୱ-ମୋଚନ
ଏବେ ମଧ୍ୟ ହୋଇଛି ସପନ ।
ଭଉଣୀମାନେ,
ଆମର ଆତ୍ମରକ୍ଷା—
ଆମ ନାରୀସତ୍ତ୍ୱର ପ୍ରତିଶ୍ରୁତି
ଏ ସମାଜ, ନା ସରକାର—
କିଏ ଦେବ ଯାଚି ?
ନିଜେ ଆମକୁ ଜାଗିବାକୁ ହେବ !
ନାରୀ ଜାତିର ଆତ୍ମରକ୍ଷା
ନାରୀ ଆଜି ନିଜେ ହିଁ କରିବ ।

ବିଦ୍ରୋହ କରିବାକୁ ହେବ
ଏ ନୀତିହୀନ ସଂସ୍ଥା ବିରୁଦ୍ଧରେ !
ନାରୀର ମୌଳିକ ଅଧିକାର
ହାସଲ କରିବାକୁ ହେବ
ବଳାତ୍କାରେ !"

ବିସ୍ମିତ ହୁଅନା !
ବାସ୍ତବିକ୍
ବଡ଼ ବିପରୀତ କଥା କି ନା !
ବକ୍ତୃତା ପରେ ହୁଏତ ଶୁଣିବ—
ତାଳି ଆଉ ଶପଥ
ଶପଥ ଆଉ ତାଳି ।
ସତେ ଅବା ଜଣାଯିବ
ମୂର୍ତ୍ତିଧର ଆସୁଛି ବିପ୍ଳବ !
ସେ ତାଳି
ସମୁଦାୟ ଭନୁବାଇ ଲେନିନ୍‌ର ତାଳି !
ସେ ଶପଥ
ନିପୀଡ଼ିତା ନାରୀ ଜାତିର
ସନ୍ଧି ଶପଥ !
ସେ ବିପ୍ଳବ
ମୁକ୍ତିକାମୀ ସମାଜର ଅଗ୍ରେଣ୍ୟ ବିପ୍ଳବ !

( କଲିକତା—୧୯୫୪ )